# ସହିଦ କର୍ତାର ସିଂ ସରାଭା

## ସହିଦ ଭଗତ ସିଂ

ଭାଷାନ୍ତର

ଅଧ୍ୟାପକ ନୀଳମଣି ସାହୁ

(ସହିଦ କର୍ତାର ସିଂ ସରାଭା ହେଉଛନ୍ତି ଭଗତ ସିଂଙ୍କ ହିରୋ । ତାଙ୍କର ଫଟୋଚିତ୍ର ସେ ସର୍ବଦା ନିଜ ପାଖରେ ରଖୁଥିଲେ ଏବଂ କହୁଥିଲେ ଯେ "ୟେ ହେଉଛନ୍ତି ମୋର ସାଥୀ, ଦାର୍ଶନିକ ଓ ପଥ ପ୍ରଦର୍ଶକ ।" ଭଗତ ସିଂଙ୍କ ପ୍ରେରଣାର ଉତ୍ସ ଓ ତାଙ୍କ ଚିନ୍ତା ସ୍ରୋତକୁ ବୁଝିବା ପାଇଁ ଏହି ଲେଖାଟି ବହୁତ ମହତ୍ୱପୂର୍ଣ୍ଣ ଅଟେ ।)

ରଣଚଣ୍ଡିଙ୍କର ଏହି ପରମ ଭକ୍ତ ବିଦ୍ରୋହୀ କରତାର ସିଂଙ୍କ ଆୟୁ ଯେତେବେଳେ ୨୦ ବର୍ଷ ବି ହୋଇ ନଥିଲା ସେତେବେଳେ ସେ ସ୍ୱତନ୍ତ୍ରତା ଦେବୀଙ୍କ ବଳିବେଦୀରେ ନିଜକୁ ବଳିଦାନ କରି ଦେଇଥିଲେ । ଝଡ଼ ଭଳି ସେ ହଠାତ୍ କେଉଁଠୁ ଆସିଲେ, ଅଗ୍ନି ପ୍ରଜ୍ୱଳିତ କଲେ ଓ ସ୍ୱପ୍ନ ବିହ୍ୱଳ ରଣଚଣ୍ଡିଙ୍କୁ ଜାଗ୍ରତ କରିବା ପ୍ରୟାସ କଲେ। ବିଦ୍ରୋହ ଯଜ୍ଞ ରଚନା କଲେ ଓ ଶେଷରେ ନିଜେ ହିଁ ସେଥିରେ ଭସ୍ମ ହୋଇଗଲେ । ସେ କଅଣ ଥିଲେ, କେଉଁ ଦୁନିଆଁରୁ ଅଚାନକ ଆସିଲେ ଓ ହଠାତ୍ କୁଆଡ଼େ ଚାଲିଗଲେ, ଆମେ କିଛି ବି ଜାଣି ପାରିଲେନି । ୧୯ ବର୍ଷର ବୟସରେ ହିଁ ସେ ଏତେ କାମ କରି ଦେଖେଇ ଗଲେ ସେ କଥା ଭାବିଲେ ଆଶ୍ଚର୍ଯ୍ୟ ଲାଗୁଛି । ଏତେ

ହିମ୍ମତ, ଏତେ ଆତ୍ମବିଶ୍ୱାସ, ଏତେ ଆତ୍ମତ୍ୟାଗ ଆଉ ଏପରି ଅଧ୍ୟବସାୟ ଖୁବ୍ କମ୍ ଦେଖିବାକୁ ମିଳେ । ଭାରତବର୍ଷରେ ଏପରି ମଣିଷ ଖୁବ୍ କମ୍ ଜନ୍ମ ହୋଇଛନ୍ତି, ଯାହାଙ୍କୁ ଯଥାର୍ଥ ଅର୍ଥରେ ବିଦ୍ରୋହୀ କୁହାଯାଇ ପାରିବ, କିନ୍ତୁ ଏହି ବିଶିଷ୍ଟ ନେତାମାନଙ୍କ ତାଲିକାରେ କରତାର ସିଂଙ୍କ ନାମ ସବା ଉପରେ ରହିଛି । ତାଙ୍କର ପ୍ରତି ରକ୍ତବିନ୍ଦୁରେ ବିପ୍ଳବର ଭାବନା ଭରି ରହିଥିଲା । ତାଙ୍କ ଜୀବନର ଗୋଟିଏ ହିଁ ଲକ୍ଷ୍ୟ, ଗୋଟିଏ ହିଁ ଇଚ୍ଛା ଓ ଗୋଟିଏ ହିଁ ଆଶା ବୋଲି ଯଦି କିଛି ଥିଲା, ତେବେ ତାହା ଥିଲା ବିପ୍ଳବ । ସେଥିପାଇଁ ସେ ଏ ଦୁନିଆଁରେ ପାଦ ରଖିଥିଲେ ଓ ସେଥିପାଇଁ ସେ ଏ ଦୁନିଆଁରୁ ଚାଲିଗଲେ ।

ତାଙ୍କର ଜନ୍ମ ୧୮୯୬ ମସିହାରେ ଲୁଧିୟାନା ଜିଲ୍ଲାର ସରାଭା ଗ୍ରାମରେ ହୋଇଥିଲା । ସେ ମାତାପିତାଙ୍କର ଏକମାତ୍ର ପୁତ୍ର ଥିଲେ । ତାଙ୍କର ବୟସ ଅତି କମ୍ ହୋଇଥିବା ବେଳେ ତାଙ୍କ ପିତାଙ୍କ କାଳ ହୋଇ ଯାଇଥିଲା । କିନ୍ତୁ ତାଙ୍କର ଜେଜେ ବହୁତ ଯତ୍ନର ସହ ତାଙ୍କର ଲାଳନପାଳନ କରିଥିଲେ । ନବମ ଶ୍ରେଣୀ ପଢ଼ିବା ପରେ ସେ କକାଙ୍କ ପାଖକୁ ଚାଲିଗଲେ । ସେଠାରେ ସେ ଦଶମ ପାସ୍ କରି କଲେଜରେ ପଢ଼ିବାରେ ଲାଗିଲେ । ଏହା ୧୯୧୦-୧୧ ସମୟର କଥା । ଏଠାରେ ସ୍କୁଲ ଓ କଲେଜ ପାଠ୍ୟକ୍ରମର ସଂକୀର୍ଣ୍ଣ ପରିସରକୁ ଅତିକ୍ରମ କରି ବାହାରର ବହୁତ ପୁସ୍ତକ ପଢ଼ିବା ସୁଯୋଗ ମିଳିଲା । ଏହା ଆନ୍ଦୋଳନର ଯୁଗ ଥିଲା । ଏହି ବାତାବରଣରେ ରହି ତାଙ୍କର ଦେଶ-ପ୍ରେମର ଭାବନା ପଲ୍ଲବିତ ହେବାରେ ଲାଗିଲା ।

ଏହା ପରେ ତାଙ୍କର ଆମେରିକା ଯିବା ପାଇଁ ଇଚ୍ଛା ହେଲା । ପରିବାରର ଲୋକେ ତାର କୌଣସି ବିରୋଧ କଲେନି । ତାଙ୍କୁ ଆମେରିକା ପଠେଇ ଦିଆଗଲା। ୧୯୧୨ ରେ ସେ ସାନଫ୍ରାନ୍ସିସ୍କୋ ବନ୍ଦରରେ ପହଞ୍ଚିଲେ । ସ୍ୱାଧୀନ ଦେଶରେ

ପହଞ୍ଚି ପାଦ ପାଦକେ ତାଙ୍କର କୋମଳ ହୃଦୟରେ ଚୋଟ ପରେ ଚୋଟ ପଡ଼ିବାରେ ଲାଗିଲା । ଏହି ଗୋରାଙ୍କ ମୁହଁରୁ Damn Hindu (ବିଭତ୍ସ ହିନ୍ଦୁ), Black man (କଳା ଲୋକ) ଆଦି ଶୁଣିବା କ୍ଷଣି ହିଁ ସେ ପାଗଳ ହୋଇ ଉଠୁଥିଲେ । ଦେଶର ମର୍ଯ୍ୟାଦା ଓ ସମ୍ମାନ ପାଦ ପାଦକେ ବିପଦରେ ଥିବା ତାଙ୍କୁ ଦେଖାଗଲା । ଘର ମନେ ପଡ଼ିବା କ୍ଷଣି ଶିକୁଳିରେ ବନ୍ଧା ବିବଶ ଭାରତ ତାଙ୍କ ଆଖି ସାମନାରେ ନାଚି ଉଠୁଥିଲା । ତାଙ୍କର କୋମଳ ହୃଦୟ ଧୀରେ ଧୀରେ କଠିନ ହେବା ସଙ୍ଗେ ସଙ୍ଗେ ଦେଶର ସ୍ୱାଧୀନତା ପାଇଁ ନିଜ ଜୀବନକୁ ଉତ୍ସର୍ଗ କରିବା ନିଷ୍ପତ୍ତି ବି ଦୃଢ଼ତର ହେବାରେ ଲାଗିଲା । ସେତେବେଳେ ତାଙ୍କରି ହୃଦୟରେ କଅଣ ସବୁ ଘଟି ଯାଉଥିଲା, ଆମେ ବା କିପରି ବୁଝି ପାରିବା ।

ଶାନ୍ତିରେ ରହିବା ତାଙ୍କ ପକ୍ଷେ ଅସମ୍ଭବ ଥିଲା । ତାଙ୍କ ମନରେ ସର୍ବଦା ଏହି ପ୍ରଶ୍ନ ଉଙ୍କି ମାରୁଥିଲା ଯେ ଶାନ୍ତିରେ ଯଦି କାମ ନହେଲା, ତେବେ କେଉଁ ବାଟରେ ଦେଶ ସ୍ୱାଧୀନ ହେବ? ତେବେ ଆଉ ଅଧିକ ନ ଭାବି ସେ ଭାରତୀୟ ମଜଦୁରମାନଙ୍କର ସଂଗଠନ ଗଢ଼ିବା ଆରମ୍ଭ କରିଦେଲେ । ସେମାନଙ୍କ ମଧ୍ୟରେ ସ୍ୱାଧୀନତାର ଭାବନା ଅଙ୍କୁରିତ ହେବାରେ ଲାଗିଲା । ପ୍ରତ୍ୟେକ ମଜଦୁର ପାଖରେ ଘଣ୍ଟା ଘଣ୍ଟା ବସି ସେ କେବଳ ଏହା ହିଁ ବୁଝେଇବାରେ ଲାଗିଲେ ଯେ ଅପମାନ ଭରା ଗୋଲାମୀ ଜୀବନ ଅପେକ୍ଷା ମରଣ ହଜାର ଗୁଣ ଭଲ । କାମ ଆରମ୍ଭ ହେବା ପରେ ଆହୁରି ଲୋକ ଆସି ତାଙ୍କ ସହ ଯୋଗ ଦେଲେ । ମଇ, ୧୯୧୨ରେ ଏହି ଲୋକମାନଙ୍କର ଏକ ବିଶେଷ ବୈଠକ ବସିଲା । ସେଥିରେ କେତେକ ବଛା ବଛା ଭାରତୀୟ ଯୋଗ ଦେଲେ। ସମସ୍ତେ ଦେଶର ସ୍ୱାଧୀନତା ପାଇଁ ଦେହ, ମନ, ଧନ ସବୁ କିଛି ଉତ୍ସର୍ଗ କରିଦେବା ପାଇଁ ପ୍ରତିଜ୍ଞା କଲେ । ଏହି ସମୟରେ ପଞ୍ଜାବର

ଦ୍ୱୀପାନ୍ତରୀତ ଦେଶଭକ୍ତ ଭଗତ ସିଂ ସେଠାରେ ପହଞ୍ଚିଲେ । ଧଡ଼ାଧଡ଼୍ ସଭା, ସମିତି, ବୈଠକ ହେଲା; ଉପଦେଶ, ପରାମର୍ଶ ଚାଲିଲା । କାମ ପରେ କାମ ଲାଗି ରହିଲା । କ୍ଷେତ୍ର ପ୍ରସ୍ତୁତ ହୋଇଗଲା। ପୁଣି ଏକ ଖବରକାଗଜର ଆବଶ୍ୟକତା ଅନୁଭବ ହେଲା। "ଗଦର" (ବିଦ୍ରୋହ) ନାମକ ଖବରକାଗଜ ବାହାର କରାଗଲା । ଏହାର ପ୍ରଥମ ଅଙ୍କ ନଭେମ୍ବର, ୧ ୯ ୧ ୩ ରେ ବାହାରିଲା । ଏହାର ସମ୍ପାଦକୀୟ ବିଭାଗରେ କରତାର ସିଂ ବି ଥିଲେ । ତାଙ୍କରି କଲମରେ ଅଗାଧ ଉତ୍ସାହ ଥିଲା । ସମ୍ପାଦକୀୟ ବିଭାଗର ଲୋକମାନେ ଖବରକାଗଜକୁ ହ୍ୟାଣ୍ଡ ପ୍ରେସରେ ଛାପୁ ଥିଲେ । ବିପ୍ଳବ-ପସନ୍ଦି ମତୁଆଲା ଯୁବକ ଥିଲେ କରତାର ସିଂ । ପ୍ରେସ ଚଳେଇ ଚଳେଇ ଥକି ଗଲା ବେଳେ ସେ ଗୀତ ଗାଉଥିଲେ ।

ସେବା ଦେଶ ଦୀ ଜିଂଦଡ଼ିଏ ବଡ଼ି ଔଖୀ,
ଗଲ୍ଲାଁ କରନିଆଁ ଢେର ସୁଖଲ୍ଲିଆଁ ନେ ।
ଜିନ୍ନାଁ ଦେଶସେବା ବିଚ୍ ପୈର ପାୟା,
ଉନ୍ନାଁ ଲକ୍ଷ ମୁସୀବତାଁ ଝାଲିଆଁ ନେ ।

(ଦେଶ ସେବା କରିବା ବହୁତ କଷ୍ଟକର, ଅଥଚ କଥା କହିବା ଖୁବ୍ ସହଜ । ଯେଉଁମାନେ ଦେଶସେବା ପଥରେ ପାଦ ଥୋଇଲେଣି, ସେମାନେ ଲକ୍ଷେ ବିପତ୍ତି ସହନ୍ତି ।)

କରତାର ସିଂ ଯେପରି ବିଭୋର ହୋଇ ପରିଶ୍ରମ କରୁଥିଲେ, ତାହା ଦେଖି ସମସ୍ତଙ୍କର ହିମ୍ମତ ବଢ଼ି ଯାଉଥିଲା । ଭାରତକୁ କି ଭାବରେ ସ୍ୱାଧୀନ କରାଯିବ, ଏହା ଆଉ କାହାକୁ ଜଣା ଥାଉ ବା ନଥାଉ, ଆଉ କେହି ଏହି ପ୍ରଶ୍ନ ଉପରେ ଭାବି ଥାଉ ବା ନଥାଉ, କରତାର ସିଂ କିନ୍ତୁ ଏହି ପ୍ରଶ୍ନ ଉପରେ ବହୁ କିଛି ଭାବି ସାରିଥିଲେ। ଏହି

ସମୟରେ ସେ ନିଉୟର୍କର ଏକ ବିମାନ କମ୍ପାନୀରେ ଭର୍ତ୍ତି ହୋଇଗଲେ ଓ ମନ ଲଗେଇ କାମ ଶିଖିଲେ।

ସେପ୍ଟେମ୍ବର, ୧୯୧୪ ରେ କାମାଗାଟାମାରୁ ଜାହାଜକୁ ଅତ୍ୟାଚାରୀ ଗୋରା ସାମ୍ରାଜ୍ୟବାଦୀମାନଙ୍କ ଆଡୁ ଅବର୍ଣ୍ଣନୀୟ ଜାତନା ସହି ସେମିତି ହିଁ ଫେରିବାକୁ ପଡ଼ିଥିଲା । ଆମ କରତାର ସିଂ ସେତେବେଳେ କ୍ରାନ୍ତିପ୍ରିୟ ଗୁପ୍ତା ଓ ଆଉ ଏକ ଆମେରିକୀୟ ଅରାଜକତାବାଦୀ ଜ୍ୟାକ୍ଙ୍କୁ ସଙ୍ଗରେ ନେଇ ଜାପାନ ଗଲେ ଓ କୋବେ ଠାରେ ବାବା ଗୁରଦିତ୍ତସିଂ ଜୀଙ୍କ ସହ ଦେଖା କରି ସମସ୍ତ ବିଷୟରେ କଥାବାର୍ତ୍ତା କଲେ । ଯୁଗାନ୍ତର ଆଶ୍ରମ, ସାନଫ୍ରାନ୍ସିସ୍କୋର ଗଦର ପ୍ରେସରୁ "ଗଦର ଓ ଗଦରର ଗୁଞ୍ଜନ" ତଥା ଅନ୍ୟ ବହୁତ ପୁସ୍ତକ ଛାପି ବଣ୍ଟା ଯାଉଥିଲା । ଦିନକୁ ଦିନ ପ୍ରଚାର ବଢ଼ି ଚାଲିଲା । ଉତ୍ସୁକତା ବଢ଼ି ଚାଲିଲା । ଫେବୃଆରୀ, ୧୯୧୪ ରେ ଷ୍ଟାକ୍ରନ୍ର ସାଧାରଣ ସଭାରେ ସ୍ୱାଧୀନତାର ଝଣ୍ଡା ଉଡ଼ାଗଲା ଏବଂ ସ୍ୱାଧୀନତା ଓ ସମାନତାର ନାମରେ ଶପଥ ନିଆଗଲା । ଏହି ସଭାର ମୁଖ୍ୟ ବକ୍ତାମାନଙ୍କ ମଧ୍ୟରେ କରତାର ସିଂ ମଧ୍ୟ ଥିଲେ । ସମସ୍ତେ ଘୋଷଣା କଲେ ଯେ ସେମାନେ ନିଜ ନିଜର ଝାଳବୁହା କମାଇକୁ ଏକାଠି କରି ଦେଶର ସ୍ୱାଧୀନତା ସଂଗ୍ରାମରେ ଲଗେଇ ଦେବେ। ସେମାନଙ୍କର ଖୁସୀର ଅନ୍ତ ନଥିଲା । ଏକ ସ୍ୱରରେ ସମସ୍ତେ ଗାଇବାରେ ଲାଗିଲେ:

ଚଲୋ ଚଲେଁ ଦେଶ କେ ଲିଏ ଯୁଦ୍ଧ କରନେ,
ୟହ ଆଖିରୀ ୱଚନ୍ ୱ ଫରମାନ ହୋ ଗୟେ ।
(ଚାଲରେ ଚାଲ, ଦେଶ ପାଇଁ ଯୁଦ୍ଧ କରିବା ଚାଲ,
ଏଇ ଶେଷ କଥା, ଏହା ହିଁ ଆଜ୍ଞା, ଚାଲରେ ଚାଲ ।)

ସ୍ୱଦେଶକୁ ଫେରିବା ପାଇଁ କରତାର ସିଂ ଜୋର୍‌ସୋରରେ ପ୍ରଚାର କଲେ । ନିଜେ ଜାହାଜରେ ଚଢ଼ି କଲମ୍ବୋ (ଶ୍ରୀଲଙ୍କା) ରେ ପହଞ୍ଚି ଗଲେ । ଏହି ସମୟରେ ଆମେରିକାରୁ ପଞ୍ଜାବ ଆସିବାବାଲାଙ୍କ ମଧ୍ୟରୁ ଅଧିକାଂଶ ଡିଫେନ୍ସ ଅଫ୍ ଇଣ୍ଡିଆ କାନୁନ (ଡି. ଆଇ. ଆର୍.) ବଳରେ ଧରିନିଆ ଯାଉଥିଲେ । ବହୁତ କମ୍ ଲୋକ ଠିକ୍ ଠାକ୍ ପହଞ୍ଚି ପାରୁଥିଲେ । କରତାର ସିଂ କିନ୍ତୁ ଠିକ୍ ଠାକ୍ ପହଞ୍ଚି ଗଲେ । ବଡ଼ ଜୋର୍‌ସୋର୍‌ରେ କାମ ଆରମ୍ଭ ହେଲା । ସଂଗଠନର ଅଭାବ ଥିଲା, କିନ୍ତୁ କୌଣସି ଭାବରେ ବି ସେହି ଅଭାବକୁ ଦୂର କରାଗଲା। ଡିସେମ୍ବର, ୧୯୧୪ ରେ ମରାଠୀ ଯୁବକ ବିଷ୍ଣୁ ଗଣେଶ ପିଙ୍ଗଲେ ମଧ୍ୟ ଆସି ଗଲେ । ଏମାନଙ୍କ ଚେଷ୍ଟାରେ ଶ୍ରୀ ଶଚୀନ୍ଦ୍ରନାଥ ସାନ୍ୟାଲ ଓ ରାସବିହାରୀ ପଞ୍ଜାବ ଆସିଲେ । କରତାର ସିଂ ଯେ କୌଣସି ସମୟରେ ଯେଉଁଠି ବି ପହଞ୍ଚି ଯାଉଥିଲେ । ଆଜି ମୋଗାରେ ଗୁପ୍ତ ମିଟିଂ ହେଉଛି ତ ସେ ସେଠି ଅଛନ୍ତି । କାଲି ଲାହୋରର ଛାତ୍ରଙ୍କ ମଧ୍ୟରେ ପ୍ରଚାର ହେଉଛି ତ ସେ ପ୍ରଥମ ଧାଡ଼ିରେ ଥିବେ । ପର ଦିନ ଫିରୋଜପୁର ଛାଉଣିରେ ସୈନିକମାନଙ୍କ ସହ ମିଳିତ ସାମୁଖ୍ୟ କରୁଥିବେ । ପୁଣି ହତିଆର ପାଇଁ କଲିକତା ଯାଉଥିବେ । ଟଙ୍କାପଇସାର ଅଭାବ ପ୍ରଶ୍ନ ଉଠିବାରୁ ସେ ଡକେଇତି କରିବା ପାଇଁ ପରାମର୍ଶ ଦେଲେ । ଡକେଇତି ନାଁ ଶୁଣୁ ଶୁଣୁ ଅଧିକାଂଶ ଲୋକ ସ୍ତମ୍ଭିତ ହୋଇ ରହିଗଲେ, କିନ୍ତୁ ସେ କହିଲେ ଯେ କୌଣସି ଭୟ ନାହିଁ । ଭାଇ ପରମାନନ୍ଦ ବି ଡକେଇତି ସପକ୍ଷରେ ଅଛନ୍ତି । ଭାଇ ପରମାନନ୍ଦଙ୍କ ସମର୍ଥନ ଆଣିବା ଦାୟିତ୍ୱ ତାଙ୍କୁ ଦିଆ ଯାଇଥିଲା । ତା ପର ଦିନ ସେ ତାଙ୍କୁ ନ ଭେଟି ହିଁ କହି ଦେଲେ, "ପଚାରି ଆସିଲି, ସେ ଏକମତ ।" କେବଳ ଟଙ୍କାର ଅଭାବ ଯୋଗୁଁ ବିପ୍ଳବର ପ୍ରସ୍ତୁତିରେ ବିଳମ୍ବ ଘଟୁ — ଏହି କଥା ସେ ସହିପାରୁ ନଥିଲେ ।

ଦିନେ ସେମାନେ ଡକେଇତି କରିବା ପାଇଁ ଗୋଟିଏ ଗାଆଁକୁ ଗଲେ । କରତାର ସିଂ ନେତା ଥିଲେ । ଡକେଇତି ଚାଲୁଥିଲା । ଘରଟିରେ ଅତି ସୁନ୍ଦରୀ ଝିଅଟିଏ ବି ଥିଲା । ତାକୁ ଦେଖି ଏକ ପାପୀ ଆତ୍ମାର ମନ ଅସ୍ଥିର ହେଲା । ସେ ଜବର୍‌ଦସ୍ତି ଝିଅଟିର ହାତକୁ ଭିଡ଼ି ଧରିଲା । ଝିଅଟି ବ୍ୟସ୍ତ ହୋଇ ପାଟି କଲା । କରତାର ସିଂ ଏକବାରେ ରିଭଲ୍‌ଭର୍ ଉଠେଇ ତା ପାଖରେ ପହଞ୍ଚିଲେ ଓ ସେହି ଲୋକଟିର ମୁଣ୍ଡ ପାଖେ ପିସ୍ତଲ ରଖି ତାକୁ ନିରସ୍ତ୍ର କରି, ରାଗି କହିଲେ, "ପାପୀ! ତୋର ଅପରାଧ ତ ନିହାତି ଗର୍ହିତ । ତୋତେ ତ ମୃତ୍ୟୁ ଦଣ୍ଡ ମିଳିବା କଥା, କିନ୍ତୁ ପରିସ୍ଥିତିର ବିବଶତା ଯୋଗୁଁ ତୋତେ କ୍ଷମା କରା ଯାଉଛି । ଚଞ୍ଚଳ ଏହି ଝିଅଟିର ପାଦ ତଳେ ପଡ଼ି କ୍ଷମା ମାଗି କହ, ଭଉଣୀ! ମୋତେ କ୍ଷମା କରିଦିଅ । ପୁଣି ଏହାର ମାଁଙ୍କର ପାଦ ଛୁଇଁ କହ, ମାତା ଜୀ, ମୁଁ ମୋର ଏହି ଦୁର୍ଗତି ପାଇଁ କ୍ଷମା ଚାହୁଁଛି । ଯଦି ସେମାନେ ତୋତେ କ୍ଷମା କରି ଦେବେ, ତେବେ ତୋତେ ଜୀଅନ୍ତା ଛାଡ଼ି ଦିଆଯିବ ନହେଲେ ଗୁଳିରେ ଉଡ଼େଇ ଦିଆଯିବ ।" ସେ ସେମିତି ହିଁ କଲା । କଥା ତ ବେଶି କିଛି ବଢ଼ି ନଥିଲା । ଏହା ଦେଖି ମା ଓ ଝିଅଙ୍କ ଆଖିରେ ଲୁହ ଭରି ଗଲା । ମାଁ କରତାର ସିଂଙ୍କୁ ସ୍ନେହଭରା କଣ୍ଠରେ ପଚାରିଲେ, "ପୁଅ! ଏମିତିକା ଧର୍ମାତ୍ମା ଓ ସୁଶୀଳ ଯୁବକ ହେଇ ତୁମେ ଏଇ କାମରେ କେମିତି ଯୋଗ ଦେଲ?" କରତାର ସିଂଙ୍କ ହୃଦୟ ବି ତରଳି ଗଲା । ସେ କହିଲେ, "ମା ଜୀ! ଟଙ୍କାର ଲାଳସାରେ ଆମେ ଏ କାମ ଆରମ୍ଭ କରିନୁ । ନିଜର ସବୁ କିଛି ବାଜି ଲଗେଇ ଡକେଇତି କରିବାକୁ ଆସିଛୁ । ହତିଆର କିଣିବା ପାଇଁ ଟଙ୍କାର ଆବଶ୍ୟକତା ରହିଛି । ତାକୁ କେଉଁଠୁ ଆଣିବୁ? ମା ଜୀ, ଏହି ମହାନ କାମ ପାଇଁ ଆଜି ଆମେ ଏଇ କାମ କରିବା ପାଇଁ ବାଧ୍ୟ ହୋଇଛୁ ।" ସେତେବେଳେ ସେହି ଦୃଶ୍ୟଟି ବଡ଼ ହୃଦୟ ବିଦାରକ ଥିଲା । ମାଁ

ପୁଣି କହିଲେ, "ଏହି ଝିଅଟିକୁ ବାହା ଦେବାର ଅଛି । ଏହା ପାଇଁ କିଛି ଛାଡ଼ି ଯାଇଥିଲେ ଭଲ ହୁଅନ୍ତା ।" ଏହା ପରେ ସେ ଧରିଥିବା ସମସ୍ତ ଧନ ମାଁଙ୍କ ସାମନାରେ ରଖି କହିଲେ, "ଯେତେ ଇଚ୍ଛା ନେଇ ଯାଆନ୍ତୁ ।" କିଛି ପଇସା ରଖି ବାକି ସବୁ କରତାର ସିଂଙ୍କ ହାତକୁ ବଢ଼େଇ ଦେଇ ଆଶୀର୍ବାଦ କରି କହିଲେ, "ଯାଅ ପୁଅ, ତୁମକୁ ସଫଳତା ମିଳୁ ।" ଡକେଇତି ଭଳି ଭୟଙ୍କର କାମରେ ସାମିଲ ହୋଇ ବି କରତାର ସିଂଙ୍କ ହୃଦୟ କେତେ ଭାବନାମୟ, ପବିତ୍ର ଓ ବିଶାଳ ଥିଲା, ଏହି ଘଟଣାରୁ ସ୍ପଷ୍ଟ ରୂପେ ଜଣା ପଡ଼େ ।

ଫେବୃଆରୀ, ୧୯୧୫ ର ବିଦ୍ରୋହ ପାଇଁ ପ୍ରସ୍ତୁତି ଚାଲିଥିଲା । ପ୍ରଥମ ସପ୍ତାହରେ ପିଙ୍ଗଳେ ଓ ଅନ୍ୟ ଦୁଇ ତିନି ଜଣ ସାଥୀଙ୍କ ସାଙ୍ଗରେ ସେ ଆଗ୍ରା, କାନପୁର, ଇଲାହାବାଦ, ଲକ୍ଷ୍ନୌ, ମିରଟ ଓ ଅନ୍ୟ କେତେକ ସ୍ଥାନରେ ମତ ଓ ବିଦ୍ରୋହ ପାଇଁ ସେଠିକା ଲୋକଙ୍କ ସହ ସମ୍ପର୍କ ଓ ଏକାତ୍ମତା ସ୍ଥାପନ କରି ଆସିଲେ। ପରିଶେଷରେ ସେହି ଦିନ ପାଖେଇ ଆସିବାରେ ଲାଗିଲା, ଯାହା ପାଇଁ ବହୁ ଦିନରୁ ଅପେକ୍ଷା କରା ଯାଉଥିଲା। ୨୧ ଫେବୃଆରୀ, ୧୯୧୫ ରେ ଭାରତରେ ବିପ୍ଳବ ପାଇଁ ଦିନ ଧାର୍ଯ୍ୟ ହୋଇଥିଲା । ତାକୁ ଧରି ପ୍ରସ୍ତୁତି ଚାଲୁଥିଲା । କିନ୍ତୁ ଏହି ସମୟରେ ସେମାନଙ୍କର ଆଶାବୃକ୍ଷର ମୂଳକୁ ମୂଷାଟିଏ କୁଟୁରାଉ ଥିଲା । ଚାରି ପାଞ୍ଚ ଦିନ ପୂର୍ବରୁ ସନ୍ଦେହ ହେଲା ଯେ କିର୍‌ପାଲ୍‌ସିଂର ବିଶ୍ୱାସଘାତକତା ଯୋଗୁଁ ସବୁ ଧ୍ୱସ୍ତବିଧ୍ୱସ୍ତ ହୋଇଯିବ । ଏହି ଆଶଙ୍କାରେ କରତାର ସିଂ ବିଦ୍ରୋହର ତାରିଖ ୨୧ ବଦଳରେ ୧୯ ଫେବୃଆରୀ କରିବା ପାଇଁ ରାସବିହାରୀ ବୋଷଙ୍କୁ କହିଲେ । ଏହା ହେବା ପରେ ତାର ବାସନା ବି କିର୍‌ପାଲ୍‌ସିଂ ପାଇଗଲା । ଏହି ବିପ୍ଳବୀ ଦଳରେ ଜଣେ ବିଶ୍ୱାସଘାତକ ରହି କେତେ ଯେ ବିପଦଜନକ ପରିଣତିର କାରଣ ହେଲା ତାର

ହିସାବ ନାହିଁ । ରାସବିହାରୀ ଓ କରତାର ସିଂ ମଧ୍ୟ କୌଣସି ଏକ ଉଚିତ ବ୍ୟବସ୍ଥା ନଥିବା ଯୋଗୁଁ ନିଜ ଭେଦ ଲୁଚେଇ ରଖି ପାରିଲେନି । ଏହାର କାରଣ ଭାରତର ଦୁର୍ଭାଗ୍ୟ ଛଡ଼ା ଆଉ କଅଣ ହୋଇ ପାରେ?

କରତାର ସିଂ ପର ନିଷ୍ପତ୍ତି ଅନୁସାରେ ପଚାଶ ସାଠିଏ ସାଥୀଙ୍କୁ ସଙ୍ଗରେ ନେଇ ଫିରୋଜପୁରରେ ଯାଇ ପହଞ୍ଚିଲେ । ନିଜର ସାଥୀ ସୈନିକ ହାବିଲ୍‌ଦାରଙ୍କୁ ଭେଟି ବିପ୍ଳବ କଥା କହିଲେ । କିନ୍ତୁ କିର୍‌ପାଲ୍‌ସିଂ ତ ଆଗରୁ ସାରା ମାମଲା ବିଗାଡ଼ି ଦେଇଥିଲା । ଭାରତୀୟ ସିପାହୀମାନଙ୍କୁ ନିରସ୍ତ୍ର କରି ଦିଆଗଲା । ଧଡ଼ାଧଡ଼୍ ଗିରଫଦାରୀ ଚାଲିଲା । ହାବିଲ୍‌ଦାର ସହାୟତା କରିବାକୁ ମନା କରିଦେଲେ । କରତାର ସିଂଙ୍କ ଚେଷ୍ଟା ବିଫଳ ହେଲା । ନିରାଶ ହୋଇ ସେ ଲାହୋର ଫେରିଲେ । ପଞ୍ଜାବ ସାରା ଗିରଫଦାରୀ ଝଡ଼ ଜୋର୍‌ଦାର ହେଲା । ଏବେ ସାଥୀମାନେ ବି ଖସିବାରେ ଲାଗିଲେ ।

ଏପରି ପରିସ୍ଥିତିରେ ରାସବିହାରୀ ବୋଷ ମନ ମାରି ଲାହୋରର ଏକ କୋଠାରେ ପଡ଼ି ରହିଥିଲେ । କରତାର ସିଂ ବି ସେଠାକୁ ଆସି ଖଟିଆଟିଏ ଉପରେ ଅନ୍ୟ ଆଡ଼କୁ ମୁହଁ କରି ପଡ଼ି ରହିଲେ । ପରସ୍ପର ସହ କଥାବାର୍ତ୍ତା କଲେନି, ହେଲେ ଚୁପ୍‌ଚାପ୍ ରହି ବି ଜଣେ ଅନ୍ୟ ଜଣଙ୍କର ମନର ସ୍ଥିତି ବୁଝିଗଲେ । ସେମାନଙ୍କର ହାଲତ୍‌କୁ ନେଇ ଆମେ ବା କି ଅନ୍ଦାଜ କରି ପାରିବା!

ଦରେ-ତଦ୍‌ବୀର ପର୍ ସର୍ ଫୋଡ଼୍‌ନା ଶେବଃ ରହା ଅପନା
ବସୀଲେ ହାଥ ହୀ ନା ଆଏ କିସ୍ମତ୍ ଆଜମାଇ କେ ।
(ଭାଗ୍ୟ ଦୁଆରେ ତ ମୁଣ୍ଡ ପିଟା ଭଳି ହୋଇଲା ଆମର କାମ

ଭାଗ୍ୟ ପରଖିବା ପାଇଁ ସାଧନ ହିଁ ହୋଇଲା ହାତକୁ ବାମ ।)

ତାଙ୍କର ଇଚ୍ଛା ଥିଲା — କେଉଁଠି ଲଢ଼େଇ ହେଉ ଓ ନିଜ ଦେଶ ପାଇଁ ଲଢୁ ଲଢୁ ପ୍ରାଣ ଦେଇ ଦେବି। ପୁଣି ସରଗୋଧା ପାଖରେ ଥିବା ଚକ୍କ ନମ୍ବର ପାଞ୍ଚରେ ଆସି ପହଞ୍ଚିଲେ । ପୁଣି ବିଦ୍ରୋହର ଚର୍ଚ୍ଚା ଆରମ୍ଭ କରି ଦେଲେ । ସେଠାରେ ଧରା ପଡ଼ିଗଲେ । ଶିକୁଳିରେ ବନ୍ଧା ହେଲେ । ନିର୍ଭିକ ବିଦ୍ରୋହୀ କରତାର ସିଂଙ୍କୁ ଲାହୋର ଷ୍ଟେସନକୁ ଅଣାଗଲା । ପୋଲିସ୍ କପ୍ତାନ୍‌ଙ୍କୁ କହିଲେ, "ମିଷ୍ଟର ଟମ୍‌କିନ୍, କିଛି ଖାଇବାକୁ ତ ଆଣନ୍ତୁ ।" ସେ କେତେ ବେପରୁଆ ଥିଲେ! ସେହି ଆକର୍ଷକ ବ୍ୟକ୍ତିତ୍ୱ ଦେଖି ମିତ୍ର କଅଣ ଶତ୍ରୁ କଅଣ ସମସ୍ତେ ଖୁସୀ ହେଇ ଯାଉଥିଲେ । ଗିରଫଦାରୀ ସମୟରେ ସେ ବହୁତ ଖୁସୀ ଥିଲେ । ସେ ସର୍ବଦା କହୁଥିଲେ,"ବୀରତା ଓ ହିମ୍ମତପୂର୍ବକ ମରିବା ପରେ ମୋତେ ବିଦ୍ରୋହୀ ଉପାଧି ଦେବ । କେହି କେବେ ମନେ ପକାନ୍ତି ତ ବିଦ୍ରୋହୀ କରତାର ସିଂ ବୋଲି ମନେ ପକାନ୍ତୁ ।" ମକଦ୍ଦମା ଚାଲିଲା । ସେହି ସମୟରେ କରତାର ସିଂଙ୍କୁ ମୋଟେ ସାଢ଼େ ଅଠର ବର୍ଷ ହୋଇଥିଲା । ସମସ୍ତଙ୍କ ଠାରୁ କମ୍ ଆୟୁର ଅପରାଧୀ ସେ ହିଁ ଥିଲେ, ତଥାପି ଜଜ୍ ତାଙ୍କରି ସମ୍ବନ୍ଧରେ ଲେଖିଥିଲେ, "ଏହି ଅପରାଧୀମାନଙ୍କ ମଧ୍ୟରେ, ସବୁଠୁଁ ବିପଦଜନକ ଅପରାଧୀ ଯେଉଁମାନେ ସେମାନଙ୍କ ମଧ୍ୟରେ ଇୟେ ଜଣେ । ଆମେରିକାରେ ରହଣି କାଳରେ ଓ ପୁଣି ଭାରତରେ ଭିଆଇ ଥିବା ଏହି ଷଡ଼ଯନ୍ତ୍ରର ଏମିତି କୌଣସି ଦିଗ ନାହିଁ ଯେଉଁଥିରେ ସେ କୌଣସି ମହତ୍ୱପୂର୍ଣ୍ଣ ଭୂମିକା ପାଳନ କରି ନଥିଲେ।"

ଦିନେ ତାଙ୍କର ବୟାନ୍ ଦେବାର ପାଳି ଆସିଲା । ସବୁ କିଛି ମାନିଜିବା ସତ୍ତ୍ୱେ ସେ ତାଙ୍କର ବୈପ୍ଳବିକ ବୟାନ୍ ଦେବାରେ ଲାଗିଲେ । ଜଜ୍ କଲମଟିକୁ ଦାନ୍ତରେ ଭିଡ଼ି ଧରି କେବଳ ଅନେଇ ରହିଲେ । ପଦଟିଏ ବି ଲେଖୁ ନଥିଲେ । ପରେ ଏତିକି

କହିଲେ, "କରତାର ସିଂ, ଏବେ ଆପଣଙ୍କର ବୟାନ୍ ଲେଖା ଯାଇନି । ବୁଝିବିଚାରି ବୟାନ୍ ଦିଅନ୍ତୁ । ଆପଣ ଜାଣନ୍ତି କି ଆପଣଙ୍କ ବୟାନ୍‌ର ପରିଣାମ କଅଣ ହୋଇପାରେ?" ଦେଖିବା ଲୋକେ କହନ୍ତି ଯେ ଜଜ୍‌ଙ୍କ ଏହି କଥାର ଉତ୍ତରରେ କରତାର ସିଂ ବଡ଼ ଉଲ୍ଲସିତ ଢ଼ଙ୍ଗରେ କେବଳ ଏତିକି କହିଲେ, "ଫାଶୀ ହିଁ ତ ଦେବେ, ଆଉ କଅଣ? ମୁଁ ତାକୁ ଡରୁନି ।" ସେ ଦିନର ଅଦାଲତ କାର୍ଯ୍ୟ ସେଇଠି ସରିଲା। ପରଦିନ ଅଦାଲତରେ ପୁଣି କରତାର ସିଂଙ୍କ ବୟାନ୍ ଆରମ୍ଭ ହେଲା। ପ୍ରଥମ ଦିନ ଜଜ୍ ହୁଏତ ଭାବୁଥିଲେ ଯେ ଭାଇ ପରମାନନ୍ଦଙ୍କ ଇଙ୍ଗିତରେ କରତାର ସିଂ ଏପରି ବୟାନ୍ ଦେଉଥିଲେ, ଅଥଚ ସେ ବିଦ୍ରୋହୀ କରତାର ସିଂଙ୍କର ହୃଦୟର ଗଭୀରତା ଭିତରେ ପଶିପାରୁ ନଥିଲେ । କରତାର ସିଂଙ୍କ ବୟାନ୍ ଅଧିକ ଜୋର୍‌ଦାର୍, ଅଧିକ ପ୍ରତାପୀ ହୋଇଥିଲା ଓ ପ୍ରଥମ ଦିନର ଭଳି ହିଁ ସ୍ୱୀକୃତି ରହିଥିଲା । ଶେଷରେ ସେ କହିଲେ, "ଅପରାଧ ପାଇଁ ମୋତେ ଆଜୀବନ କାରାଦଣ୍ଡ ମିଳିବ ଅବା ଫାଶୀ । କିନ୍ତୁ ମୁଁ ଫାଶୀକୁ ପ୍ରାଥମିକତା ଦେବି, ତାହା ହେଲେ ମୁଁ ପୁଣି ଜନ୍ମ ହେଇ — ଯେବେ ଯାଏଁ ଭାରତ ସ୍ୱାଧୀନ ନ ହେଇଛି, ସେବେ ଯାଏଁ ବାରମ୍ବାର ଜନ୍ମ ହେଇ ଫାଶୀଖୁଣ୍ଟରେ ଝୁଲୁଥିବି । ଏହା ହିଁ ମୋର ଅନ୍ତିମ ଇଚ୍ଛା...।"

ତାଙ୍କରି ବୀରତାରେ ଜଜ୍ ବହୁତ ପ୍ରଭାବିତ ହେଲେ, ତଥାପି ସେ ଜଣେ ବିଶାଳ ହୃଦୟୀ ଶତ୍ରୁ ଭଳି ତାଙ୍କର ବୀରତାକୁ ବୀରତା ନକହି ନିର୍ଲଜ୍ଜ ଭାଷାରେ ମନେ ପକେଇଲେ । କରତାର ସିଂଙ୍କୁ କେବଳ ଗାଳି ନୁହେଁ, ମୃତ୍ୟୁଦଣ୍ଡ ବି ମିଳିଲା । ସେ ହସ ହସ ମୁହଁରେ ଜଜ୍‌ଙ୍କୁ ଧନ୍ୟବାଦ ଦେଲେ । କରତାର ସିଂ ଫାଶୀ କୋଠରିରେ ବନ୍ଦୀ ଥିଲେ । ତାଙ୍କର ଜେଜେ ଯାଇ କହିଲେ, "କରତାର ସିଂ, ଯାହା ପାଇଁ ମରୁଛ, ସେମାନେ ତୁମକୁ ଗାଳି ଦେଉଛନ୍ତି । ତୁମେ ମଲେ ଦେଶର କିଛି ଲାଭ ହେବ, ଏକଥା

ବି ଦେଖା ଯାଉନି ।'' କରତାର ସିଂ ବହୁତ ଧୀରେ ପଚାରିଲେ — ''ଜେଜେ, ଫଲଣା ସମ୍ପର୍କୀୟ କେଉଁଠି ଅଛନ୍ତି?''

"ପ୍ଲେଗ୍‌ରେ ମରି ଗଲେ ।''

"ଫଲଣା କେଉଁଠି ଅଛନ୍ତି?''

"ହଇଜାରେ ମରିଗଲେ ।''

"ତେବେ କଅଁଣ ଆପଣ ଚାହୁଁଛନ୍ତି ଯେ କରତାର ସିଂ କୌଣସି ରୋଗରେ ପଡ଼ି ମାସ ମାସ ଧରି ବିଛଣାରେ ଶୋଇ, ଯନ୍ତ୍ରଣାରେ ସଢ଼ି, ଦୁଃଖୀ ହୋଇ ମରୁ । ସେହି ମୃତ୍ୟୁ ଠାରୁ ଏହି ମୃତ୍ୟୁ ହଜାର ଗୁଣ ଭଲ ନୁହେଁ?'' ଜେଜେ ଚୁପ୍ ରହିଲେ ।

ଆଜି ପୁଣି ପ୍ରଶ୍ନ ଉଠୁଛି ଯେ ତାଙ୍କରି ମରଣରେ ଲାଭ କଅଣ ହେଲା? କାହିଁ ପାଇଁ ସେ ମଲେ? ଏହାର ଉତ୍ତର ଅତ୍ୟନ୍ତ ସ୍ୱଷ୍ଟ । ଦେଶ ପାଇଁ ମଲେ । ଦେଶ ସେବା ପାଇଁ ଲଢ଼ୁ ଲଢ଼ୁ ମରିବା ହିଁ ତାଙ୍କର ଆଦର୍ଶ ଥିଲା। ଏହାଠୁଁ ଅଧିକା କିଛି ସେ ଚାହୁଁ ନଥିଲେ । ସେଥିରେ ପୁଣି ଅଜଣା ଅଶୁଣା ମରଣ ସେ ଚାହୁଁଥିଲେ ।

ଚମନ ଜାରେ ମୁହବ୍ବତ୍ ମେଁ, ଉସୀ ନେ ବାଗବାନୀ କୀ,
ଜିସନେ ମିହନତ୍ କୋ ହି ମିହନତ୍ କା ସମର ଜାନା ।
ନହିଁ ହୋତା ହୈ ମୁହତାଜେ ନୁମାଇଶ୍ ଫୈଜ୍ ଶବନମ୍ କା,
ଅନ୍ଧେରୀ ରାତ୍ ମେଁ ମୋତୀ ଲୁଟା ଜାତୀ ହୈ ଗୁଲ୍‌ଶନ୍ ମେଁ ।
(ଉଦ୍ୟାନ ବାହୁନା ଅନୁରାଗ ଭରା, ନିତି ଝୁରୁଥାଏ ମାଳିକୁ,
ପରିଶ୍ରମର ଫଳ ବୁଝିଥିଲା ସିଏ ହିଁ ତ ପରିଶ୍ରମକୁ ।
ଦର୍ଶାଅନା କେବେ ଦୁଷ୍ଟ ଶିଶିରର ଉଦାର ପଣର ରୀତି,

ଅନ୍ଧାର ରାତିରେ ସିଏ ସିନା ମୋତି ବିଛୁଥାଏ ନୀତି ନୀତି ।)

ଦେଢ଼ ବର୍ଷ ଧରି ମକଦ୍ଦମା ଚାଲିଲା । ଦିନଟି ଥିଲା ୧୬ ନଭେମ୍ବର, ୧୯୧୫, ଯେଉଁ ଦିନ ତାଙ୍କୁ ଫାଶୀଖୁଣ୍ଟରେ ଝୁଲେଇ ଦିଆଗଲା । ସବୁ ଦିନ ଭଳି ସେହି ଦିନ ବି ସେ ଖୁସି ଥିଲେ । ତାଙ୍କ ଓଜନ ଦଶ ପାଉଣ୍ଡ୍ ବଢ଼ି ଯାଇଥିଲା । "ଭାରତମାତାଙ୍କ ଜୟ" କହି କହି ସେ ଫାଶୀଖୁଣ୍ଟରେ ଝୁଲି ଗଲେ ।

e-mail: neelamanisahu@rediffmail.com

୯୪୩୭୫୧୫୭୮୨